୰ଶ୍ରୀମଦ୍ ରୂପଗୋସ୍ୱାମୀନାଂ ବିରଚିତଂ

# ଚାଟୁପୁଷ୍ପାଞ୍ଜଲିଃ ।







ଶ୍ରୀମଦ୍ ରୂପଗୋସ୍ୱାମୀନାଂ ବିରଚିତଂ

# ଚାଟୁପୁଷ୍ପାଞ୍ଜଳିଃ ।



ବାବାଜୀ

ଶ୍ରୀ ବୈଷ୍ଣବଚରଣ ଦାସଙ୍କ ଦ୍ୱାରା

ସମ୍ପାଦିତ ଓ ପଦ୍ୟାନୁବାଦିତ ।



ଶ୍ରୀ ବଳରାମ ସାହୁ ସଙ୍ଗୀତରତ୍ନଙ୍କ ଦ୍ୱାରା

ପ୍ରଥମବାର ପ୍ରକାଶିତ ।



ସାହାଯ୍ୟ ଃ ୦/ ଏକଅଣା ।

ଶ୍ରୀ ଶ୍ରୀ ଗୌରାଙ୍ଗ ପ୍ରଭୁ ନିତ୍ୟପାର୍ଷଦ ଶ୍ରୀମଦ୍ରୂପ ଗୋସ୍ୱାମିନା ବିରଚିତଂ ।

# ଚାଟୁପୁଷ୍ପାଞ୍ଜଳିଃ

୪ ୪ ପ



## ଶ୍ରୀ ଶ୍ରୀଗୁରୁ ଗୌରାଙ୍ଗ ଦେବୌ ଜୟତି ।

### ଶ୍ଲୋକଃ ।

ନବ ଗୋରୋଚନା ଗୌରୀଂ ପ୍ରବରେନ୍ଦୀବରାମ୍ବରାମ୍ ।
ମଣି ସ୍ତବକ ବିଦ୍ୟୋତି ବେଣୀ ବ୍ୟାଳାଙ୍ଗନା ଫଣାମ୍ । ୧ ।

### ପୟାର ।

ନବ ଗୋରୋଚନା ସମ ଶ୍ରୀଅଙ୍ଗ ବରନ ।
ଇନ୍ଦୀବର ସମ ନୀଳ ସୂକ୍ଷ୍ମ ବସନ ॥
କାଳଫଣୀ ଜିଣି ବେଣୀ ଶିରେ ଶୋଭିବନ ।
ତହିଁ ମଣି ରତ୍ନ ଝଟକଇ ଅଗଣନ ॥
ଏମନ୍ତ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରଥାଅ ତୁ ସମ୍ପଦ । ୧ ।

### ଶ୍ଲୋକଃ ।

ଉପମାନ ଘଟାମାନ ପ୍ରହାରି ମୁଖମଣ୍ଡଳାଂ ।
ନବେନ୍ଦୁ ନିନ୍ଦିଭାଲୋଦ୍ୟତ୍ କସ୍ତୁରୀ ତିଲକ ଶ୍ରିୟଂ । ୨ ।

### ପୟାର ।

ଶ୍ରୀମୁଖକୁ ଉପମା ଦେବାକୁ କାହିଁ ନାହିଁ ।
ଦ୍ୱିତୀୟା ଚନ୍ଦ୍ରମାପରି ଲଲାଟ ଶୋଭଇ ॥
ତା ମଧ୍ୟରେ କସ୍ତୁରୀ ତିଳକ ମନୋହର ।
ବାଉ ବାଉ ବିରାଜଇ ଅହା କି ସୁନ୍ଦର ॥
ଏମନ୍ତ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରଥାଅ ତୁ ସମ୍ପଦ । ୨ ।

## ଶ୍ଳୋକଃ ।

ଭ୍ରୂଜିତାନଙ୍ଗ କୋଦଣ୍ଡାଂ ସ୍ନିଗ୍ଧନୀଳାଳକାବଳୀଂ ।
କଜ୍ଜଳୋଜ୍ଜ୍ୱଳ ଚକୋରୀ ଚଞ୍ଚତ୍ ଗୃଢ଼ଲୋଚନାଂ । ୩ ।

## ପୟାର ।

ଅନଙ୍ଗ-ଧନୁକୁ ଜିଣି ଭୁଲତା ମଞ୍ଜୁଳ ।
ସୁନୀଳ ଅଳକାବଳୀ କେଶେ ଝଲମଲ ॥
କଜ୍ଜଳେ ଉଜ୍ଜ୍ୱଳ ଶୁଭ୍ର ନୟନ ଯୁଗଳ ।
ଚକୋରୀ ପକ୍ଷ ଅର୍ଦ୍ଧା ଦଶେ ଚଳହଳ ॥
ଏମନ୍ତ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରଥାଅ ତୁ ସମ୍ପଦ । ୩ ।

## ଶ୍ଳୋକଃ ।

ତିଳପୁଷ୍ପାଭ ନାସାଗ୍ର ବିରାଜଦ୍ୱର ମୌକ୍ତିକାଂ ।
ଅଧରୋଦ୍ଧୂତ ବନ୍ଧୂକାଂ କୁନ୍ଦାଳୀ ବନ୍ଧୁରଦ୍ୱିଜାଂ । ୪ ।

## ପୟାର ।

ତିଳପୁଷ୍ପଜିତ ନାସା ତାହାର ଅଗ୍ରରେ ।
ଗଜ ମୋତିବର ଝୁଲେ ଅପୂର୍ବ ତେଜରେ ॥
ବନ୍ଧୁଲୀ କୁସୁମ ଜିଣି ଅଧର ଯୁଗଳ ।
କୁନ୍ଦଫୁଲ କଢ଼ି କି ଜିଣଇ ଦନ୍ତକଳ ॥
ଏମନ୍ତ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରଥାଅ ତୁ ସମ୍ପଦ । ୪ ।

## ଶ୍ଳୋକଃ ।

ସରତ୍ ସ୍ୱର୍ଣ୍ଣଖଚିତ କଠକ କୃତ କର୍ଣ୍ଣିକାଂ ।
କସ୍ତୂରୀବିନ୍ଦୁ ଚିବୁକାଂ ରତ୍ନଗ୍ରୈବେୟ କୋଜ୍ଜ୍ୱଳାଂ । ୫ ।

## ପୟାର ।

ରତନ ଖଚିତ ସୁନା କନକର କଳୀ ।
କର୍ଣ୍ଣେ ଶୋଭେ ତହିଁ ଭ୍ରମେ ବସେ ମତ୍ତ ଅଳି ॥

କସ୍ତୁରୀ ବନ୍ଦୁ ସ୍ୱଚ୍ଛ ଚନ୍ଦ୍ରକର ସ୍ଥଳେ ।
ଘନ ଗୃପସଉଛି ଉଜ୍ଜ୍ୱଳ ଦର୍ପଣ ଗଳେ ।
ଏମନ୍ତ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରୁଥାଅ ତୁ ସମ୍ପଦ । ୫ ।

ଶ୍ଲୋକଃ ।

ବଦ୍ଧାଙ୍ଗଦ ପଦ୍ମଦଳମଞ୍ଜୁ ମୃଣାଳକାନ୍ତ ।
ବଳାଦ୍ଧ ରତ୍ନବଳୟ ଲୋଳମ୍ବିକଳାଚଳାଂ । ୬ ।

ପୟାର ।

ମୃଣାଳ ପଦ୍ମସ୍ଥ ବାହୁ ବାଜୁବନ୍ଧ ତହିଁ ।
ଗୃରୁ ହସ୍ତେ ନୀଳମଣି ବଳୟ ଶୋଭଇ ।
ମଂକତ ଚୂଡ଼ି ପୁଣି ଅଛି ଅନୁପମ ।
ଅଷ୍ଟଭଡନେ ଜଡ଼ିତ କଙ୍କଣ ସୁଷମ ।
ଏମନ୍ତ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରୁଥାଅ ତୁ ସମ୍ପଦ । ୬ ।

ଶ୍ଲୋକଃ ।

ରତ୍ନାଙ୍ଗୁରୀୟ ଲୋଲ୍ଲସି ଦ୍ୱଙ୍ଗୁଳକରାମ୍ବୁଜାଂ ।
ମନୋହର ମହାହାର ବିହାର କୁଚକୁଟ୍ମଳାଂ । ୭ ।

ପୟାର ।

ଅଙ୍ଗୁଳିରେ ରତନ ମୁଦ୍ରିକା ଯାଏ ଶୋଭି ।
କୁଚଯୁଗ ପରେ ମନୋହର ହାର ପ୍ରଭି ।
ତହିଁ ପାଶେ ମୁକୁତାର ମାଳୀ ବିରାଜଇ ।
ସୁନା ଅଙ୍ଗ ଅନ୍ୱାର୍କ ସୁନ୍ଦର ଦିଶୁଥାଇ ।
ଏମନ୍ତ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରୁଥାଅ ତୁ ସମ୍ପଦ । ୭ ।

ଶ୍ଲୋକଃ ।

ରୋମାଳୀ ଭୁଜଗୀ ମୂର୍ଦ୍ଧ ରତ୍ନାଭରଣାଶ୍ରିତାଂ ।
ମନ୍ତ୍ରିତ୍ରୀ ଲତାବଦ୍ଧ କ୍ଷୀଣଲଗ୍ନ ମଧ୍ୟମାଂ । ୮ ।

## ପୟାର ।

ରୋମାବଳୀ ଉଠିଅଛି ଫଣିନୀ ପରିରେ ।
ତାର ମଧ୍ୟେ ମଣି ଶୋଭେ ତାର ମସ୍ତକରେ ॥
ଏତେ କ୍ଷୀଣ କଟି ଭାଙ୍ଗିପଡ଼ିବା ଭୟରେ ।
ବନ୍ଧନହୋଇଛି ତେଣୁ ତ୍ରିବଳୀ ଲତାରେ ॥
ଏମନ୍ତ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରିଥାଅ ତୁ ସମ୍ପଦ । ୮ ।

## ଶ୍ଳୋକଃ ।

ମଣି ସାର ସନା ଧାର ବିସ୍ତାର ଶ୍ରୋଣିବିମ୍ବୋଧୟ ।
ହେମ ରମ୍ଭା ମଦଭମ୍ଭ ସ୍ତମ୍ଭାନୋର ଯୁଗାଙ୍କିତଂ । ୯ ।

## ପୟାର ।

ନିତମ୍ବ ଦେଶରେ ମଣିମୟ ମେଖଳାଟି ।
ଝୁଣ୍ଟ ଝୁଣ୍ଟ କାଞ୍ଚଣରେ ଦଶେ ପରିପାଟି ॥
ହମ ରମ୍ଭା ଜିଣି ଉରୁ ଅତ୍ୟନ୍ତ ସୁନ୍ଦର ।
ଏକମୁଖେ ତାକୁ କବା ଦେବା ପଟାନ୍ତର ॥
ଏମନ୍ତ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରିଥାଅ ତୁ ସମ୍ପଦ । ୯ ।

## ଶ୍ଳୋକଃ ।

କାନ୍ତିଯୁତ ଜପସ୍ତୁ ପୀତବସ୍ତ୍ର ସମନ୍ବିତାଂ ।
ଶରନ୍ନୀରଜନୀରାଜ୍ୟ ମଞ୍ଜୀର ଚରଣଦ୍ ପଦାଂ । ୧୦ ।

## ପୟାର ।

ପୀତବର୍ଣ୍ଣ ବସନ ପରୁଅ କଣିକର ।
ସୁକୋମଳ କାନ୍ତ ତୁଲ ଅପୁରୁବ ଶିଖା ॥
ଚରଣ କମଳେ ଗୁରୁ ନୂପୁର ସାଜଇ ।
ଗତି କଲେ ତେ ମଧୁର ମଧୁର ବାଜଇ ॥
ଏମନ୍ତ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରିଥାଅ ତୁ ସମ୍ପଦ । ୧୦ ।

## ଶ୍ଳୋକଃ ।

ଙ୍କେକେନ୍ଦ୍ କୋଟି ସୌନ୍ଦର୍ଯ୍ୟେ ନୈକ ପାଦ ନଖଦ୍ୟୁତେଃ ।
ଅଷ୍ଟାଦଃ ସାନ୍ଦ୍ରବୈର୍ଶବୈ ଭାବୁଣୀ ବୃତ ଦତ୍ତ୍ରଣାଂ । ୧୧ ।

## ପୟାର ।

ଗଜାଇନ୍ଦୁ କୋଟି କୋଟି ସୌନ୍ଦର୍ଯ୍ୟ ଗୁଣେ ।
ଯେହ୍ନ ଶୋଭାପାଉଥାନ୍ତି ଦ୍ୱାଦଶାଭରଣେ ॥
ପାଦପଦ୍ମ-ନଖ ଶୋଭା କୋଟି ପୂର୍ଣ୍ଣଶଶି ।
ଅଷ୍ଟସାତ୍ତ୍ୱିକଭାବରେ ଅତୁଳ ବିଶେଷି ॥
ଏମନ୍ତ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରଥାଅ ତୁ ସମ୍ପଦ । ୧୧ ।

## ଶ୍ଳୋକଃ ।

ମନ୍ଦାଗ କୃପାପାଙ୍ଗାଂ ମନୋଜ୍ଞୋର୍ମିତ ରଙ୍ଗିତାଂ ।
ଭାମାରବ ପ୍ରିୟାନନ୍ଦାଂ ବନ୍ଦେ ବୃନ୍ଦାବନେଶ୍ୱରୀଂ । ୧୨ ।

## ପୟାର ।

ମୁକୁନ୍ଦ ଶ୍ରୀଅଙ୍ଗେ ସଦା ଅପାଙ୍ଗ ପକାନ୍ତି ।
ମଦନ ତରଙ୍ଗେ ହାବ ଭାବ ପ୍ରକାଶନ୍ତି ॥
ପ୍ରାଣେଶଙ୍କ ଆନନ୍ଦବର୍ଦ୍ଧନେ କେତେ ଯତ୍ନ ।
ଶ୍ରୀ ଶ୍ରୀ ବୃନ୍ଦାବନେଶ୍ୱରୀ ଯେ ବିଶୋଭି ରତ୍ନ ॥
ଏମନ୍ତ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରଥାଅ ତୁ ସମ୍ପଦ ॥

## ଶ୍ଳୋକଃ ।

ଅସ୍ମି ଗୋଦ୍ୟନ୍ମହାଭାବ ମାଧୁର୍ଯ୍ୟ ବନ୍ଧକାନ୍ତରେ ।
ଅଶେଷ ନାୟିକାବସ୍ଥା ପ୍ରାକଟ୍ୟା ଦ୍ଭୁତ ଚେଷ୍ଟିତେ । ୧୩ ।

## ପୟାର ।

ଅଗୋ ରାଧେ ମହାଭାବେ ହୋଇଣ ବିହ୍ୱଳା ।
ପ୍ରକାଶ ସର୍ବ ନାୟିକା ଅବସ୍ଥା ମଞ୍ଜୁଳା ॥

ଅଦ୍ଭୁତ ଚେଷ୍ଟା ଭୂମିର କରାଅ ଦର୍ଶନ ।
ଏ ଅଧମ ପ୍ରତି ବାରେ ହୁଅ ସୁ ପ୍ରସନ୍ନ ॥
ରାସେଶ୍ୱରୀ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରଥାଅ ତୁ ସମ୍ପଦ । ୧୩ ।

ଶ୍ଳୋକଃ ।

ସର୍ବ ମାଧୁର୍ଯ୍ୟ ସନ୍ଦୋହୀ ନିର୍ମିତ ପଦାମ୍ବୁଜେ ।
ଲକ୍ଷ୍ମୀ ମୃଗ୍ୟ ସୌନ୍ଦର୍ଯ୍ୟ ସୁରତାଙ୍ଗ୍ରି ନଖ ଚନ୍ଦ୍ରେ । ୧୪ ।

ପୟାର ।

ସର୍ବ ମାଧୁର୍ଯ୍ୟର ଛଟା ତବ ଶ୍ରୀପଦ୍ମରେ ।
ନଖ ଶୋଭା ଲଭିବାକୁ ଲକ୍ଷ୍ମୀ ଆଶା କରେ ॥
ସେବାପାଇଁ ଅଗୋ ରାଧେ ତୁମ୍ଭ ପଦ ଦାସୀ ।
ବେଲବନେ ରମାଦେବୀ ତପକରେ ବସି ॥
ରାସେଶ୍ୱରୀ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରଥାଅ ତୁ ସମ୍ପଦ । ୧୪ ।

ଶ୍ଳୋକଃ ।

ଗୋକୁଳେନ୍ଦ୍ର ମୁଗ୍ଧୀକୃତ ସୀମନ୍ତୋ'ତ୍ତଂ ସ ସମ୍ପଦେ ।
ନିଜପାଦ ସଖୀ ପୃଥ ଜବ ଦୁସ୍ପିତ ବୋଲଦେ । ୧୫ ।

ପୟାର ।

ବ୍ରଜସୁନ୍ଦରୀମାନଙ୍କ ମୁକୁଟରମଣୀ ।
ଲଳିତା ବିଶାଖାଅଦ୍ଧ ଯେତେକ ସଖୀଶ୍ରେଣୀ ॥
ସେହି ସମସ୍ତଙ୍କର ଯେ ଆନନ୍ଦଦାୟିନୀ ।
ଦୀନହୀନ ଜନେ ପ୍ରେମଭକ୍ତି ବରଧନୀ ॥
ରାସେଶ୍ୱରୀ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରଥାଅ ତୁ ସମ୍ପଦ । ୧୬ ।

ଶ୍ଳୋକଃ ।

ଚକ୍ରାପଦ୍ମ ନାଧୁର୍ଯ୍ୟ ବିନ୍ଦୁନ୍ଦିତ ମାଧବେ ।
ତାତ ପାଦ ଯଶ ସ୍ତୋମ କୈରବାନନ୍ଦ ଚନ୍ଦ୍ରିକେ । ୧୭ ।

## ପୟାର ।

ସୁମଧୁର କଟାକ୍ଷ ଶରଦାଣି ଭଙ୍ଗି ତବ ।
ଯହିଁରେ କି ହୋଇଥାନ୍ତି ମୋହିତ ମାଧବ ।
ଜନ୍ମହେଲ ବରଷାଣ ନଗ୍ର ଅପ୍ରାଧବ ।
ବ୍ରଜମଣ୍ଡଳେ ପାଇଲେ ଅତ୍ୟନ୍ତ ଗୌରବ ।
ବ୍ରଜେଶ୍ୱରୀ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରୁଥାଅ ତୁ ସମ୍ପଦ । ୧୭ ।

## ଶ୍ଳୋକଃ ।

ଉପାର କରୁଣାପୂର ପୂରିତାନ୍ତର୍ମନୋହ୍ରଦେ ।
ପ୍ରସୀଦାସ୍ମିନ୍ ଜନେ ଦେବି ନିଜ ଦାସ୍ୟ ସ୍ପୃହାଜୁଷି । ୧୭ ।

## ପୟାର ।

ଅଶେଷ କରୁଣା ଜଳ ତବ ମନ ହ୍ରଦେ ।
ପୂର୍ଣ୍ଣହୋଇ ରହିଅଛି ଦୟାମୟୀ ସୁଧେ ॥
ଏହି ଦୀନହୀନ ଜନେ ବାରେ ଦୟାକର ।
ହୋଇବ ତୁମ୍ଭର ଦାସୀ ମନେ ଆଶା ମୋର ॥
ବ୍ରଜେଶ୍ୱରୀ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରୁଥାଅ ତୁ ସମ୍ପଦ । ୧୭ ।

## ଶ୍ଳୋକଃ ।

କଦାଚିତଂ ଗୃହପତ୍ନୀ ଭେଳ ସେ ନ୍ଦ୍ରେନ୍ଦୁ ଦୃମନା ।
ପ୍ରାର୍ଥନୀୟ ଚଲୋପାଂଗ ଶୋଦାଦ ଦୃଷ୍ଟ ସେ ମ୍ୟା । ୧୮ ।

## ପୟାର ।

ଗ୍ରନ୍ଥ କରିବାରେ ପଦ୍ମ ଗୋବିନ୍ଦନନ୍ଦନ ।
କେତେପର ତୁମ୍ଭ ମାନ କରନ୍ତି ଭଞ୍ଜନ ।
ତୁମ୍ଭେ ବା କପଟ ବହିଥାଅ ମାନଭର ।
ତାହା ଦେଖିବାକୁ ବଡ଼ ଆଶା ଯେ ମୋହର ।
ବ୍ରଜେଶ୍ୱରୀ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଆରେ ମୂଢ଼ମନ ! କରୁଥାଅ ତୁ ସମ୍ପଦ । ୧୮ ।

## ଶ୍ଳୋକଃ ।

ତ୍ୱାଂ ସାଧୁ ମାଧବୀପୁଷ୍ପୈ ର୍ମାଧବେନ କଳାବିଦା ।
ପ୍ରସାଧ୍ୟମାନାଂ ସ୍ୱିଦ୍ୟନ୍ତୀଂ ବୀଜୟିଷ୍ୟାମ୍ୟହଂ କଦା । ୧୯ ।

## ପୟାର ।

ଚିତ୍ରଶାସ୍ତ୍ରରେ ନିପୁଣ ଅନଙ୍ଗସ୍ୟ ହର ।
ମାଧବୀଫୁଲେ ତାହାଙ୍କୁ ସଜାଇବେ ଯହିଁ ॥
ସେ ସମୟେ ଭାବାବେଶେ ହେଲେ ଘର୍ମ ଜାତ ।
ବିଞ୍ଚିବାକୁ ଭରସା ମୁଁ କରୁଛି ବହୁତ ॥
ରସେଶ୍ୱରୀ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରୁଥାଅ ତୁ ସମ୍ପଦ । ୧୯ ।

## ଶ୍ଳୋକଃ ।

କେଳିବିସ୍ରଂସିନୋ ବକ୍ରକେଶବୃନ୍ଦସ୍ୟ ସୁନ୍ଦରି ।
ସଂସ୍କାରାୟ କଦା ଦେବି ଜନମେତଂ ନିଦେଶ୍ୟସି । ୨୦ ।

## ପୟାର ।

ରତିକେଳି କାଳେ ଫିଟାଇଣ ଭୂମ୍ବ ବେଣୀ ।
ବାମ ହଇଲେ ଶାମଳ କରୁ ଅଗୋ ଧନି ! ॥
କାଞ୍ଚନ ରତ୍ନଜଡ଼ିତ ପାନିଆକୁ ଧର ।
(କେବେ) ଯତନେ କୁଣ୍ଡାଇବାକୁ ଆଦେଶିବେ ଗୋସ୍ୱି ॥
ରସେଶ୍ୱରୀ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! କରୁଥାଅ ତୁ ସମ୍ପଦ । ୨୦ ।

## ଶ୍ଳୋକଃ ।

କଦା ବିମ୍ବୋଷ୍ଠି ତାମ୍ବୂଳଂ ମୟା ତବ ମୁଖାମ୍ବୁଜେ ।
ଅର୍ପ୍ୟମାଣଂ ବ୍ରଜାଧୀଶସୂନୁରାଚ୍ଛିଦ୍ୟ ଭୋକ୍ଷ୍ୟତେ । ୨୧ ।

## ପୟାର ।

କେବେ ଏ ଅଧମେ ତବ ପୂର୍ଣ୍ଣ କୃପା ହେବ ।
ପକ୍ୱ ତାମ୍ବୂଳ ବଟିକା ଖଞ୍ଜି ଦେବି ଯେବ ॥

ଶ୍ରୀମୁଖେ ଖୁଆଇ ଦେଉଁ ହରଷ ମାନସେ ।
ତାହା ଛଡ଼ାଇ ଶ୍ରୀକୃଷ୍ଣ ଖାଇବେ ଉଦଧେୟ ।
ରାସେଶ୍ୱରୀ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! ଭଜୁଥାଅ ତୁ ସମ୍ପଦ । ୨୧ ।

## ଶ୍ଲୋକଃ ।

ବ୍ରଜନୃପ କୁମାର ବକ୍ଷକୁଚ-ସୀମନ୍ତ ମଣି ପ୍ରସୀଦ ମେ ।
ପରିବାର ଗଣସ୍ୟତେ ଯଥା ପଦବୀ ମେ ନ ଦବୀୟସୀ ଭବେତ୍ । ୨୨ ।

## ପୟାର ।

ଅଗୋ ବ୍ରଜରମଣୀମାନଙ୍କ ଶିରୋମଣି ।
ମୋତେ କୃପାକର ବୃନ୍ଦାବନଠାକୁରାଣୀ ।
ଅବଲମ୍ବେ ଯେତନେ ହେବ ଶ୍ରୀଚରଣ ଦାସୀ ।
ଏହି ଅଭିଳାଷ ମନେ ଅଛି ମୁଁ ମନାସି ॥
ରାସେଶ୍ୱରୀ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! ଭଜୁଥାଅ ତୁ ସମ୍ପଦ । ୨୨ ।

## ଶ୍ଲୋକଃ ।

କରୁଣାଂ ମୁହୁରର୍ଥୟେ ପରଂ ତବ ବୃନ୍ଦାବନ ଚକ୍ରବର୍ତ୍ତିନି ।
ଅପି କେଶିରିପୋର୍ଯଥା ଭବେତ୍ ସ ଚଟୁ ପ୍ରାର୍ଥନ ଭାଜନଂ ଜନଃ । ୨୩ ।

## ପୟାର ।

ଅଗୋ ବୃନ୍ଦାବନେଶ୍ୱରୀ ! ଏହି ଭିକ୍ଷା ମୋର ।
ସଦା ଯେତେ କୃଷ୍ଣଗୁଣ କର ଗୀତ ସାର ॥
ଗାଇ ଗାଇ ବୁଲିବି ମୁଁ ପାଗଳ ମାନସେ ।
ଅଙ୍ଗୀକର ଏ ଅଧମେ ପରମ ସନ୍ତୋଷେ ।
ରାସେଶ୍ୱରୀ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଅରେ ମୂଢ଼ମନ ! ଭଜୁଥାଅ ତୁ ସମ୍ପଦ । ୨୩ ।

## ଶ୍ଳୋକଃ ।

ଇମଂ ବୃନ୍ଦାରଣ୍ୟେଶ୍ୱର୍ଯ୍ୟାଃ କେନୋ ଯଃ ପଠେତ୍ ସ୍ତବ ।
କୃଷ୍ଣପୁଷ୍ପାଞ୍ଜଳିଂ ନାମ ସ ସାଦରଶ୍ଚ କୃତାର୍ଥତଂ । ୧୪ ।

## ପୟାର ।

କୃଷ୍ଣ ପୁଷ୍ପାଞ୍ଜଳି ସ୍ତବ ଅମୃତ ସମାନ ।
ଶୁଦ୍ଧ ମନ ହୋଇ ଏହା ପଢ଼େ ଯେଉଁ ଜନ ।
ସେ ହୁଏ ଶ୍ରୀ ଗୋବିନ୍ଦଙ୍କ ସକରୁଣା ପାଶ ।
ଦେହାନ୍ତେ ଲଭଇ ରାଧାକାନ୍ତଙ୍କର ଗାଢ଼ ।
ସବେଶ୍ୱରୀ କୃପାମୟୀ ଶ୍ରୀରାଧାଙ୍କ ପଦ ।
ଆରେ ମନ୍ଦଜନ ! କରଥାଅ ତୁ ସମ୍ପଦ । ୧୪ ।
ପାମର ଅଧମ ହୀନ ବଇଷ୍ଣବ ଦାସ ।
କୃଷ୍ଣ ପୁଷ୍ପାଞ୍ଜଳି କଲା ପଦ୍ୟଛନ୍ଦେ ଶେଷ ।

ଇତି ଶ୍ରୀ ମଦ୍ରୂପ ଗୋସ୍ୱାମିନା ବିରଚିତଂ କୃଷ୍ଣପୁଷ୍ପାଞ୍ଜଳି ନାମକଂ ଶ୍ରୀ ରାଧା ସ୍ତୋତ୍ରଂ

ସମାପ୍ତଃ ।



ଅରୁଣୋଦୟ ପ୍ରେସ, ଡେଙ୍ଗାବଜାର କଟକ ।

# ☛ ବିଜ୍ଞାପନ ☚

ବ୍ରଜବାସୀ ବାବାଜୀ ଶ୍ରୀ ବୈଷ୍ଣବଚରଣ ଦାସଙ୍କ ଦ୍ୱାରା ଉଦ୍ଧାରିତ ଓ
ମୂଳ ସଂସ୍କୃତରୁ ଅନୁବାଦିତ ବୈଷ୍ଣବଗ୍ରନ୍ଥମାନଙ୍କର
ପତ୍ରାଙ୍କ ନମ୍ବରେ ରହିଅଛି ।

| | | | |
|---|---|---|---|
| ଉଜ୍ଜ୍ୱଳ ନୀଳମଣି | ... | ... | ଟ ୨୳ |
| ବୃନ୍ଦାବନ ଲୀଳାମୃତ | ... | ... | ଟ ୨୳ |
| ଗୋବିନ୍ଦ ଲୀଳାମୃତ | ... | ... | ଟ ୨୲ |
| ବିଦଗ୍ଧମାଧବ ନାଟକ ( ପଦ୍ୟମାନ ) | | ... | ଟ ୨୲ |
| ଲଳିତମାଧବ ନାଟକ ( ପଦ୍ୟମାନ ) | | ... | ଟ ୨୲ |
| ଜଗନ୍ନାଥବଲ୍ଲଭ ନାଟକ ( ପଦ୍ୟମାନ ) | | ... | ଟ ୧୳ |
| ଚୈତନ୍ୟଚନ୍ଦ୍ରୋଦୟ ନାଟକ | | ... | ଟ ୧୳ |
| କୃଷ୍ଣକର୍ଣାମୃତ | ... | ... | ଟ ୧୳ |
| ଚୈତନ୍ୟଚନ୍ଦ୍ରାମୃତ | ... | ... | ଟ ୦ ୳ |
| ପାଷଣ୍ଡଦଳନ | ... | ... | ଟ ୦ । |
| ମୁକୁନ୍ଦ ମୁକ୍ତାବଳୀ | ... | ... | ଟ ୦ ୵ |
| ପ୍ରେମଭକ୍ତିଚନ୍ଦ୍ରିକା | ... | ... | ଟ ୦ ୵ |
| ଭ୍ରମରଗୀତା | ... | ... | ଟ ୦ ୵ |
| ଗୋପୀଗୀତା | ... | ... | ଟ ୦ ୵୨ |
| ଅଷ୍ଟକାଳ ଲୀଳା ସ୍ମରଣମଙ୍ଗଳ | | ... | ଟ ୦ ୵୨ |

ପ୍ରାପ୍ତିସ୍ଥାନ :—

ଶ୍ରୀ ଶ୍ରୀ ହରିଭକ୍ତି କୁଟୀର
ବାଲୁବଜାର, କଟକ ।

ପ୍ରକାଶକ—
ଶ୍ରୀ ବଳରାମ ସାହୁ ।

Printed by Rai Sahib Giridhari Prasad Ray
AT THE ASHUTOSH PRESS,
TELENGA BAZAR, CUTTACK.
1933.